


ଶ୍ରୀ ଚିନ୍ତାମଣି ମହାନ୍ତି

ବିରଚିତ ।

C TAMANI MAHA

୧୯୧୯ ।

ପ୍ରଥମ ମୁଦ୍ରଣ ।

25 %

ମୂଲ୍ୟ ଏକ ଟଙ୍କା ଚାରି ଅଣା ।

# ଭକ୍ତ୍ୟୁପହାର ।



ପରମମାନନୀୟ,

ଉତ୍କଳ-ମୌଳିମଣ୍ଡନ, ବହୁଭାଷା-ବିଶାରଦ, ବିଦ୍ୱଜ୍ଜନପ୍ରପୂଜ୍ୟ
କାବ୍ୟପୁଣ୍ୟଯଜ୍ଞର ପ୍ରବୀଣ ପୁରୋଧା ପାରଳାଧୀଶ୍ୱର
ଶ୍ରୀଲ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ଗଜପତିନାରାୟଣଦେବ
ମହୋଦୟ-ସମୁଦାରହୃଦୟେଷୁ ।

ଅତୁଲବନ୍ଦନୀୟ ଶ୍ରୀମନ୍ ଗଜପତି ମହାରାଜ,

ଶ୍ରୀମତ୍ ସ୍ୱତଃପ୍ରବୃତ୍ତ ହୋଇ ମୋର ଖଣ୍ଡିଏ ପୁସ୍ତକର ମୁଦ୍ରଣ ବ୍ୟୟ ବହନ କରିବାକୁ ମନସ୍ଥ କରିଅଛନ୍ତି ବୋଲି ଯେଉଁ ଦିନ ଖବର ପାଇଲି, ସେ ଦିନ ମୋ ଜୀବନର ଗୋଟିଏ ସ୍ମରଣୀୟ ଶୁଭ ସୁଦିନ । ଏରୂପ ସଜୀବ ଉତ୍ସାହ ଏବଂ ସହାନୁଭୂତି ଲାଭ ମୋ ଭାଗ୍ୟରେ ପ୍ରଥମ । ଶ୍ରୀମତ୍ ବାସ୍ତବରେ ଜଣେ ଯୋଗଜନ୍ମା ଆଦର୍ଶ ନରପତି । ଶ୍ରୀମତଙ୍କର ଅନନ୍ୟ-ରାଜନ୍ୟସୁଲଭ ସଦ୍‌ଗୁଣାବଳୀ ବ୍ରିଟିଶରାଜଦ୍ୱାରରେ ପୁରସ୍କୃତ ଏବଂ ସମ୍ମାନିତ ହୋଇଅଛି ଏବଂ ସେହି ସମ୍ମାନ ହେତୁ ଉତ୍କଳମାତା ନିଜକୁ ସୌଭାଗ୍ୟବତୀ ମଣିଅଛି । ଶ୍ରୀମତଙ୍କର ବିପୁଳ ପ୍ରଶସ୍ତି ବ୍ୟକ୍ତିଗତ ନୁହେ—ତାହା ମହାର୍ଘ ଜାତୀୟ ସମ୍ପତ୍ତି । ସେହି ପ୍ରତିପତ୍ତି

ଉତ୍କଳର ବିଶାଳ ସୀମା ଅତିକ୍ରମ କରି ସମ୍ପ୍ରତି ବିଶ୍ୱବ୍ୟାପିନୀ ହୋଇଅଛି । ଯାହାଙ୍କର ରାଜଦତ୍ତ ଦୁର୍ଲଭ ଉପାଧି-କନକକିରୀଟ ଦେଶକୁ ଆଲୋକମୟ କରିଅଛି ଏବଂ ଯାହାଙ୍କ ରାଜଭଣ୍ଡାର କୋଟି-ରତ୍ନର କିରଣ-ହାସ୍ୟରେ ସଦା ସମୁଜ୍ଜ୍ୱଳ, ମୁଁ ଶୂନ୍ୟମୟ ଦୀନ-କୁଟୀରବାସୀ କ୍ଷୁଦ୍ରାଦପିକ୍ଷୁଦ୍ର, ସେହି ପୁଣ୍ୟଶୀଳ ମହାତ୍ମାଙ୍କୁ କେଉଁ ଉପାୟନ ପ୍ରଦାନ କରିବି ! ଅଧିକନ୍ତୁ ଶ୍ରୀଛାମୁଙ୍କର ଯୋଗ୍ୟ ଉପହାର ପ୍ରାକୃତ ପଦାର୍ଥରେ ନାହିଁ । ଅତଃ ଏହି "ପତ୍ରପୁଷ୍ପ" ଗୁଚ୍ଛଟି ଅର୍ପଣ କଲି । ଏହା ଶ୍ରୀଛାମୁଙ୍କର ପୂଜୋପକରଣରୂପେ ପରିଗୃହୀତ ହେଲେ ମୁଁ ନିଜକୁ କୃତାର୍ଥ ମଣିବି । ଶ୍ରୀଛାମୁ ମୋର ଦୁରବସ୍ଥା ପରିଜ୍ଞାତ ହୋଇ ମୋତେ ମାସିକ ଅର୍ଥ ସାହାଯ୍ୟ କରି ଆସୁଅଛନ୍ତି । ଶ୍ରୀଛାମୁଙ୍କର ଏହି ସ୍ନେହାନୁକମ୍ପା-ଋଣ ଭାବୀ ଜୀବନରେ ସୁଦ୍ଧା ମୋ ପକ୍ଷରେ ଅପରିଶୋଧ ।

ଭଦ୍ରକ,
୧୭ । ୨ । ୧୮ ।

ଶ୍ରୀଛାମୁଙ୍କର
ସ୍ନେହ-ମମତାବଦ୍ଧ
ଶ୍ରୀ ଚନ୍ଦ୍ରମଣି ମହାନ୍ତି ।

# ସୂଚୀପତ୍ର ।



## ବାଣୀପୂଜା ।



## ମାତୃତୀର୍ଥ ।

## ପ୍ରାକୃତିକୀ ।

## ସାମୟିକୀ ।



## ଜନ୍ମଭୂମି ।

## ବିଷାଦବୀଣା ।



## ଶୋକଗାଥା ।



## କବିତାଗୁଚ୍ଛ ।

ବିଷୟ — ପୃଷ୍ଠାଙ୍କ ।




# ବାଣୀପୂଜା ।

---

## ଆବାହନ ।



( ୧ )

( ୧୩୨୪ ସାଲ ଶ୍ରୀପଞ୍ଚମୀ ଉପଲକ୍ଷେ ରଚିତ । )

ଶ୍ରେଣୀ ।

ଆସ ବାଣି ବୀଣାପାଣି ଖିଳ-ବାଣୀ-ବିଶ୍ୱରାଣୀ
କାବ୍ୟକଳାଠାକୁରାଣୀ କବିଜନନୀ,
ତବ ନୀରାଜନାପାଇଁ ଆଣାବୋଲା ନେବେ ଚିହ୍ନି-
ଅଚ୍ଛନ୍ତି ବାସନ୍ତୀଲକ୍ଷ୍ମୀ ଫୁଲବରଣୀ,
ହର୍ଷେ ଉଭା ବନସ୍ଥଳୀ,
ଚାରୁ ଫୁଲ-ସିଂହାସନ ବକ୍ଷରେ ଧରି । ୧ ।

ମଳୟ ମାରୁତ କରେ    ଧୀର ପଲ୍ଲବ-ଚାମରେ
ଅଛୁ ତବ ଅପେକ୍ଷାରେ ଖଠଣୀ ଆଶେ,
ପୂର୍ଣ୍ଣେ ଶୁଭ ଶଙ୍ଖ ଅଳି    ମହାଭାବେ ଢଳ ଢଳ,
ଗାଏ ପିକ 'ଆଗମନୀ' କୁଞ୍ଜ-ଆବାସେ,
ଫେଇ ଚୂତ ପର୍ଣ୍ଣପୁଟେ
ଟେକିଅଛି ଭେଟିବାକୁ ସ୍ୱର୍ଣ୍ଣ ମୁକୁଟ । ୨ ।

ଆସ ଦେହେ, ଆସ ପ୍ରାଣେ,    ଆସ ମା ଅନ୍ତରେ ଧ୍ୟାନେ,
ମଙ୍ଗଳ ଆକାଂକ୍ଷା ହୃଦେ ଆଣ ସତ୍ୱର,
ଦିଅ ସାଧନାରେ ବଳ    ଉତ୍ସାହ ଶକ୍ତି ପ୍ରବଳ
କର ଆତ୍ମା ସୁନିର୍ମଳ ସତ୍ୟ ସୁନ୍ଦର,
ପଦସେବା ଯୋଗ୍ୟତା ତବ
ପ୍ରଦାନ ଗୋ ଦେବି, ଭାଗ୍ୟ ପୁଣ୍ୟ ବିଭବ । ୩ ।

ଆଶୀର୍ବାଦ-ଜ୍ୟୋତିଜାଳେ    ଧୁଅ ଉଜ୍ଜ୍ୱଳ କପାଳେ;
ମହିମା-ମୟୂଖେ ଉଠୁ ହସି ସେ ଖରେ,
ସ୍ୱର୍ଣ୍ଣମୟୀ ଲେଖନୀରେ    ଲେଖିଦିଅ ତାହା ଶିରେ
"ନବ ଉତ୍କଳିନୀ" ବୋଲି ସଫଳାକ୍ଷରେ,
ଘେନ ତାର ଭକ୍ତି-ଆରତି
ଗମ୍ଭୀର ଗୋପନ ବ୍ୟଥା ହର ଭାରତି । ୪ ।



# ଭାରତୀ ଆରାଧନା ।



(୨)

ରସକୁଲ୍ୟା ।

(୧)

ବୀଣାପାଣି ବାଣୀ-ବିଶ୍ୱ-ଜନନୀ,
ଅନନ୍ତ-ସୁବିଦ୍ୟା-ସୁବର୍ଣ୍ଣ-ଖଣି,
କବିକଣ୍ଠ-କଞ୍ଜ-କୁଞ୍ଜ-ବାସିନୀ,
ଜଡ଼ତା-ନାଗୁଣୀ-ବିଷନାଶିନୀ,
ମହାଶକ୍ତି ସନାତନୀ ଯେ,
ଅଗାଧ ଅବିଦ୍ୟା-ଅକୂପାରେ ତବ ସୁକୃପା ଶୁଭ ତରଣୀ ଯେ

(୨)

ଧରୁ ମା ମହିମା ଅମରସ୍ତୁତ,
ଜଗତ ତୋହର କ୍ରୀଡ଼ାସମ୍ଭୂତ,
ଭାଙ୍ଗି ଗଢ଼ି ପାରୁ ଇଚ୍ଛାମାତ୍ରକେ,
ଅଧମେ କୋବିଦ କରୁ ପଲକେ,
କେ ବର୍ଣ୍ଣିବ ତବ ଗୁଣ ଯେ,
ଦେବ-କବିଗୁରୁ ରସନା କଳ୍ପନା ଉଭେ ଯହିଁ ଅନିପୁଣ ଯେ ।

(୩)

ତୋ ପ୍ରସାଦେ ଧରେ କାବ୍ୟ-କମଳ
ଅକବି-କଳୁଷ-ହ୍ରଦ-ପଲ୍ୱଳ,
ମୂଢ଼-ଶୁକ୍ତି ବହେ ପାଣ୍ଡିତ୍ୟ-ମୋତି,
ମ୍ଳାନ ଭାଗ୍ୟ-ଊର୍ମି ପ୍ରକାଶେ ଜ୍ୟୋତି,
ଅଭାବେ ତୋହର ସ୍ନେହ ଯେ
ମହାମାରବତା ଉଜଡ ଏ ଭବ ଯେସନ୍ତେ ପ୍ରାଣଶୂନ୍ୟ ଦେହ ଯେ ।

(୪)

ମାହାତ୍ମ୍ୟ-ପ୍ରସୂତ, ବାଞ୍ଛି କଲ୍ୟାଣ
କୋଟି କଣ୍ଠେ କରୁ ଭାଷା ପ୍ରଦାନ,
ତହୁଁ ଏ ଅଚଳା ସିନା ସଚଳା,
ଦେଇଛୁ ବାନ୍ଧି ତୁ ସୃଷ୍ଟି-ଶୃଙ୍ଖଳା,
ଗୃଳକ ତୋହ କରୁଣା ଯେ,
ମାନବ ଜୀବନ ଉପରେ ତୋର ମା କର୍ତ୍ତବ୍ୟ ନୁହଇ ଊଣା ଯେ ।

(୫)

ବାକ୍ୟ ଉଚ୍ଚାରଣ, ଚିନ୍ତା, ଧାରଣା,
ଏ ତ୍ରିବେଣୀ ଧାରା ତୋର ସର୍ଜନା,
ପ୍ରାଣବାନ କର ରଖିଛୁ ପ୍ରାଣେ,
କେତେ ଉଚ୍ଚ ଭାବ ମନେ ସେ ଆଣେ,
ଅମୃତ ବୀଣାଝଙ୍କାର ଯେ
ଜୀବନ-ଯନ୍ତ୍ରକୁ କରେ ବିକମ୍ପିତ ସ୍ପର୍ଶି ତାର ସୂକ୍ଷ୍ମ ତାର ଯେ ।

(୫)

**ଚିନ୍ତା-ବାତ୍ୟାଘାତେ ଭାବ-ସାଗର**
**ହୁଏ ତରଙ୍ଗିତ ସୌମ୍ୟ ସୁନ୍ଦର,**
**ସେ ଭାବ ସମ୍ଭୂତ ଶବ୍ଦ-ସାହଚର୍ଯ୍ୟ,**
**ପ୍ରୟୋଜନ ହୁଏ ମାନବ ହୃଦେ,**
ସେ ବାତ୍ୟାଶକ୍ତି ମୂଳରେ ଯେ
ପୂର୍ଣ୍ଣ ଅଧିଷ୍ଠାନ ତୋର ସିନା ଦେବି, ତୁହି ତା ପ୍ରାଣ ମୂଳରେ ଯେ ।

(୬)

ପ୍ରତି ନିଃଶ୍ୱାସରେ ତୋ ଅନୁଗ୍ରହ
ଭୁଞ୍ଜୁଛନ୍ତି ଭବେ ଜୀବନିବହ,
ନରର ଯାବତ ଭରସା ଆଶା,
ଶ୍ରେଷ୍ଠତମ ତହିଁ ମଧ୍ୟରେ ଭାଷା,
ଜନନୀ ତୁହି ତାହାର ଯେ,
ଅଶୋଧ ତୋ ଋଣ ଅଯୁତ ଜନମେ ଯେନ ମା କୋଟି କୁହାର ଯେ ।



# ଅର୍ଚ୍ଚନା ।

✤

(୩)

( ୧୩୨୫ ସାଲ ଶ୍ରୀପଞ୍ଚମୀ ଉପଲକ୍ଷେ )

ସ୍ୱାଗତ ସ୍ୱାଗତ ବାଣି ବାଣୀ-ବିଧ୍ୱଗ୍ଣି,
ଅନନ୍ତ ପ୍ରତିଭାମାତା ଦେବୀ ବୀଣାପାଣି ।

ଏ କିରୂପ, ରୂପେଶ୍ୱର ନେତ୍ର ଶତଦଳେ,
କରୁଣାର ଶତଦଳ ଶୁକ୍ଳିମା ଉଜ୍ଜ୍ୱଳେ ।

ଅଧରେ ପାଟଳି ହାସ ଶତଦଳପ୍ରଭ,
ଖେଳେ ଅଙ୍ଗେ ଶତଦଳ ସୁଷମାବିଭବ ।

ଦିଅ ଦାସେ ଏହି ବର ମାଗୁଛି ପଦ୍ମରେ,
ଅସାଡ଼ ଜୀବନ-ଯନ୍ତ୍ର ଖେଳାଇ ସତ୍ୱରେ—

ପ୍ରାଚୀନ ଆଳସ୍ୟ-ଡୋର, ଖଣ୍ଡି ଦିଅ ସତ,
ନବ-ଉତ୍ତେଜନା-ଡୋର ଅମୃତେ ସିକତ ।

କି ଭେଟି ଅର୍ପିବ ମାତଃ କହୁଛି ନିଶ୍ଚୟ,
ହୋଇଥାନ୍ତା ସ୍ୱର୍ଣ୍ଣ ପିଣ୍ଡ ଯେବେ ଏ ହୃଦୟ—

ଏହିକ୍ଷଣି ତେବେ ତହିଁ ନୂପୁର ଗଢ଼ାଇ—
ଦିଅନ୍ତି ଚରଣେ ତବ ଭକ୍ତିରେ ପିନ୍ଧାଇ ।



## ବସନ୍ତ ପଞ୍ଚମୀ ।



( ୪ )

ପୁଣ୍ୟ ଶ୍ରୀପଞ୍ଚମୀ ଆଜ ବସନ୍ତୀବାସନ,
ସୁଷମା-ତରଙ୍ଗେ ରଙ୍ଗେ ନାଚୁଛି ମେଦିନୀ ।
ଧରି-କରି-ହସ୍ତ ମଧୁ ମଧୁର ଯୌବନ
କରଅଛି ପୁଣି ତାହା ପ୍ରାଣେ ଆନୟନ ।
ଢାଙ୍କିଛି ବାସନ୍ତ ଅଙ୍ଗ କୁସୁମ ଭୂଷଣ,
କାଞ୍ଚନ ଅଞ୍ଚଳ ଶୂନ୍ୟେ ସଞ୍ଚାଳେ କଞ୍ଚନ ।
ପୁଷ୍ପ କଣ୍ଠେ ଯେଉଁ ମନ୍ତ୍ର ଫୁଙ୍କନ୍ତି ଭ୍ରମରେ,
ପ୍ରଦାନ ସେ ମନ୍ତ୍ର ମାତଃ ଉତ୍କଳ କଣ୍ଠରେ ।
ଦେବଧାମ ଏ ଉତ୍କଳ ଦେବ ରାଜଧାନୀ,
ଲଭୁ ତବ ଶୁଭାଶିଷ ତା ଅଗତ ଅଣି ।
କରୁଣା-କରଣ-ଧାରା, ବର୍ଷ ରାଣି, ତବ
ଫୁଲୁ ନବ ଦିବ୍ୟାଲୋକ ଅନନ୍ତ ଉତ୍ସବ ।
ବଜାଅ ଅମୃତ ବୀଣା, ପଳାଉ ଜଡ଼ିମା,
ଜାଗ୍ରତ, ପ୍ରଦୀପ୍ତ ହେଉ ତା ମୌନ ମହିମା ।



## ବାଣୀପଞ୍ଚମୀ ।

( ୫ )

( କଲହଂସ କେଦାର )

ପ୍ରବେଶ ପୁଣ୍ୟ ପର୍ବ ବାଣୀ ପଞ୍ଚମୀ,
ଏ ଦିନ ବିଦ୍ୟାଦେବୀ ଥିଲେ ଜନମି,
ପାଠ କମାଇ ଦେଲୁ ଚଟ୍ଟ ପିଲାଏ
ହରଷେ ଖେଳେ କେହ୍ନ କେହ୍ନ ବା ଧାଏଁ ।୧।

ପ୍ରଭାତୁ ଉଠି ସର୍ବେ ଚଙ୍ଗୁଡ଼ି କରେ
ତୋଳିଲେ ଫୁଲ ପଶି ଫୁଲବନରେ,
ଗାଇଣ ନାନା ଛନ୍ଦେ ମଧୁର ଗୀତ
କଲେକ ଜୂର ବନ୍ଧୁ କାନନ-ବୀଥି । ୨ ।

ସ୍ନାନାନ୍ତେ ପୂଜାସଞ୍ଜା ଥାଳୀ ସଜାଡି
ଥୋଇଲେ ଚହ୍ଲାଲୀରେ ଧାଡ଼ିକ ଧାଡ଼ି,
ଆନନ୍ଦ ଉଚ୍ଛ୍ୱସିତ ସବୁର ମନେ,
ଅର୍ପିବେ ପୁଷ୍ପାଞ୍ଜଳି ଦେବୀ ଚରଣେ । ୩ ।

ନରେଖି ଦେବୀମୂର୍ତ୍ତି ପାଠ ମନ୍ଦିରେ
ନମିଲେ କର ଯୋଡ଼ି ଶ୍ରଦ୍ଧା ଭକ୍ତିରେ,
ଭାରତୀ ଉପବିଷ୍ଟା ହଂସ ଉପରେ,
ସ୍ୱର୍ଣ୍ଣ ବିପଞ୍ଚୀ ଶୋଭେ କମଳ-କରେ । ୪ ।

ବାହନ ବର୍ଣ୍ଣ ବାସ ଭୂଷା ସକଳ
କୁନ୍ଦ କର୍ପୂର ରୌପ୍ୟ ଜିଣି ଧବଳ,
ଧବଳ ଶତଦଳ ଲୋଟେ ପଦ୍ମରେ,
ହୃଦସ୍ଥ ପରିପୂର୍ଣ୍ଣ ଅଭୀଷ୍ଟ ବରେ । ୫ ।

ମହିମା-ଜ୍ୟୋତି ଜ୍ୱଳେ ନେତ୍ରଯୁଗଳେ,
ଖେଳେ କରୁଣା-ହାସ୍ୟ ଆସ୍ୟମଣ୍ଡଳେ,
ଭାଳେ ତ୍ରିବଳୀ ଚିତ୍ରା ଦର୍ଶେ ଉଦାର,
ଶାନ୍ତି ପ୍ରୀତି ତୃପ୍ତିର ତ୍ରିବେଣୀ ଧାର ।୬।

ଦୃଷ୍ଟି ପ୍ରସନ୍ନତାକୁ ନାହିଁ ଉପମା,
ଶ୍ରୀଅଙ୍ଗେ ନାଚି ବୁଲେ ସୌମ୍ୟ ସୁଷମା,
ବରଦା ମୂର୍ତ୍ତି ସ୍ନିଗ୍ଧ ପ୍ରଭା ପ୍ରକାଶେ,
ଉଡ଼ୁ ବୁଲନ୍ତି ଶୋଭାରାଶି ଚୌପାଶେ । ୭ ।

ସମର୍ପି ପୂଜା ଶେଷେ କୁସୁମାଞ୍ଜଳି
କଲେ ବାଳକେ ମାତୃପଦ୍ମରେ ଅଳି,
ମଧୁର ବାଳଭାଷା ଦେବ ଆଦୃତ
ବହାଇଦେଲା ଶତ ଧାରେ ଅମୃତ । ୮ ।

ତଦନ୍ତେ ଅବଧାନ ପାଣ୍ଡୁ ମେଲାଣି
ଦେବ ସକଳେ ହେଲେ ଗୃହପ୍ରୟାଣୀ,
ସଦାଗ୍ରେ ସେବ ଦେବୀ ପ୍ରସାଦ-ସୁଧା
ପଶ୍ଚାତେ ଭୁଞ୍ଜି ଅନ୍ନ ଦମିଲେ କ୍ଷୁଧା । ୯ ।

ପ୍ରଭାତେ ପଶି ପର୍ବେ ଛାତ୍ରମାଙ୍କଲେ
ଖୋଜ ବୁଲିଲେ ଇଷ୍ଟ ଶକୁନ ଫଳେ,
କେ ଯାଏ ବେତ କେବା ଖଡ଼ୀ ନଡ଼ିଆ,
କେ ପାଇ ଗୁଆ ହେଲା କୂଳରେ ଠିଆ ।୧୦।

ପୂର୍ଣ୍ଣିମା ଯାଏ କ୍ରୀଡ଼ା ଆହାର ଭୁଲି
ମାଗିଲେ ଗୃହଭିକ୍ଷା ଗ୍ରାମରେ ବୁଲି,
ସ୍ୱଗୃହେ ବନ୍ଧୁଗୃହେ ଗାଇ ସଙ୍ଗୀତ
ଅର୍ପିଲେ ଗୁରୁ ପାଶେ ଅର୍ଜିତ ବିତ୍ତ ।୧୧।

ଏରୂପେ କରି ଗୃହେ ଉତ୍ସବ ଶେଷ
ପଠନେ କଲେ ପୁଣି ଆତ୍ମନିବେଶ,
ଲଭିଲେ ଶିକ୍ଷା ଏଥୁ ଶିଶୁପ୍ରକୃତ,
ଦେବତା ଭକ୍ତି ସହ ଗୁରୁଭକ୍ତ ।୧୨।



## ବାଣୀପଦେ ଆତ୍ମଜଣାଣ ।



(୨)

ଜର୍ପୀ ମାତଃ ବୀଣାପାଣି ନୀଞ୍ଚଜନସ୍ତୁନା,
ଏ ବୀଣା କଙ୍କର ପକ୍ଷେ ଏଡ଼େ ବଡ଼ମ୍ବନା ।

ଭକ୍ତିମାନ ସମର୍ପିବ କରଅଛୁ ସାଧ,
ଦୀନତା-ପାମରୀ ତହିଁ ସାଧେ ମହାବାଦ ।

ତାହା ସଙ୍ଗେ ଯୁଝିବାକୁ ଅଣ୍ଟୁ ନାହିଁ ବଳ,
ତୁହ ଏକା ଏ ସଙ୍କଟେ ସହାୟ କେବଳ ।

ତୋ କରୁଣା ଦୃଷ୍ଟିପାତ ହେଲେ ବରଭୁଜା,
ଅର୍ପିବ ପଦ୍ମରେ ତବ ଶ୍ରଦ୍ଧା ଭକ୍ତି ପୂଜା ।

କ ଗୃହ୍ୱ ହସାରେ ମୋର, ମୁଁ ଛାର ମାନବ,
ବଜାଇଲେ ବାଜୁଥିବ, ଅନ୍ୟଥା ନୀରବ ।



## ପ୍ରାର୍ଥନା ।

(୭)

ଜ୍ଞାନ ଦେ ଜ୍ଞାନଦା ଦେବୀ ବୀଣାପାଣି,
ଚିହ୍ନିବ ତୋ ଦତ୍ତ ଜ୍ଞାନେ ତୋତେ ବାଣୀ ।

ବିଫଳ ପାର୍ଥିବ ରୁଦ୍ର କୋଳାହଳ
ବର୍ଷୁଛି ମୋ କର୍ଣ୍ଣେ ପ୍ରଚଣ୍ଡ ଅନଳ ।

କ୍ଷଣେ କ୍ଷଣେ ଲମ୍ଫ ଦେଉଅଛି ଭଙ୍ଗି,
କରଦେ ବଧିର ମୋତେ ମା ଶୁଭ୍ରାଙ୍ଗି

ସେହି କୋଳାହଳେ ତବ ପୁଣ୍ୟ ପୂଜା
ଯାଉଅଛି ମୁହିଁ ହୁଡ଼ି ବରଭୁଜା ।

ବଧିର ହେଲେ ମୁଁ ଲଭନ୍ତି ନିସ୍ତାର,
କରନ୍ତି ଜୀବନେ ତବ ପୂଜା ସାର ।

ସେ ଦଣ୍ଡକୁ ମୋର ନ ଥିଲା ଶୋଚନା,
ଲଭନ୍ତି ଯଦ୍ୟପି ତବ ପଦାର୍ଚ୍ଚନା ।

ମଣନ୍ତି ତାହାକୁ ଇଷ୍ଟ ପୁରସ୍କାର,
ହୁଅନ୍ତା ସଂସାର ଶାନ୍ତିର ଆଧାର ।

ଗହଳେ ତୋ ଧ୍ୟାନ ହୁଏ ନାହିଁ ସ୍ଥିର,
ଲୋଡ଼େ ତୋହୋ ପୂଜା ବିଜନ ମନ୍ଦିର ।



# ମାତୃତୀର୍ଥ ।



(୧)

## ପୁରୀ ।



ପୁରି, ଶୁଦ୍ଧ ସ୍ୱର୍ଣ୍ଣ ସ୍ୱର୍ଗେ ବାରସ୍ୱତ ପୁରୀ,
ଆକର୍ଷେ ଅନ୍ତର ତୋର ଅସ୍ୱପ୍ନ ମାଧୁରୀ ।
ବିଶ୍ୱ-ମୋହ-ଗୂଢ଼ଗ୍ରନ୍ଥି- ବିକର୍ତ୍ତନ ଛୁରୀ,
ହୃଦୟସ୍ଥ ଭଣ୍ଡାର କରୁ ଅଲକ୍ଷିତେ ଚୂରି ।
ନିରନ୍ତର ପାରାବାର ପ୍ରେମେ ଝୁରି ଝୁରି
ବ୍ୟସ୍ତ ସ୍ୱରେ ଆଶା ପ୍ରାଣେ କରେ ତୋତେ ହୁରି ।
ବାଜୁଛି ତୋ ନାମେ ବିଶ୍ୱେ ମହିମା-ମଞ୍ଜୁରି,
ସ୍ୱାର୍ଥ-ପାପ-ଶୋକ-ଶୈଳେ ଦେଉ ହେଳେ ଚୂରି ।
ସମନ୍ୱୟ-ଧର୍ମ-ଧରା ସାମ୍ରାଜ୍ଞୀ ତୁ ପୁରି,
ଖିଳ ବିଶ୍ୱ ତୀର୍ଥରାଣୀ ତୀର୍ଥେଶ୍ୱରୀ ସୁରୀ ।
ଜ୍ଞାନାଞ୍ଜନ-ବର୍ତ୍ତିକା ତୁ ନୟନେ ସଞ୍ଚରି,
କୈବଲ୍ୟପସରା ବକ୍ଷେ ବସାଇଛୁ ଭୁରି ।
ମର୍ତ୍ତ୍ୟର ବୈକୁଣ୍ଠଧାମ ଧନ୍ୟ ଧନ୍ୟ ପୁରି,
ବଜାଅ ଏ ମୃତ ପ୍ରାଣେ ସଞ୍ଜୀବନୀ-ତୁରୀ ।"



(୨)

## ଶ୍ରୀ ମନ୍ଦିର ।



ଏ କି ଦେବାଳୟ, ନା ନା, ପୁଣ୍ୟ ଉତ୍କଳର
ମହିମାର ମାନଦଣ୍ଡ ସ୍ମୃତିଶାଳତର ।

ଏହାର ପ୍ରତ୍ୟେକ ଶିଳା ପ୍ରତ୍ୟେକ ଇଷ୍ଟକ.
ଜାତୀୟ-ଗୌରବ-ଧନ ମହାର୍ଘ-ସ୍ମାରକ ।

ବ୍ୟକ୍ତ କରି ଗତ ସ୍ମୃତି ଅବ୍ୟକ୍ତ ଭାଷାରେ
ବର୍ଷୁଛି ସାନ୍ତ୍ୱନା-ସୁଧା ହାକୁତ ଆଶାରେ ।

ଲିଖିତ ବିରାଟ ଅଙ୍ଗେ କେତେ ଇତିହାସ,
ଆଣେ ପ୍ରାଣେ ଯୁଗପତ ମହୋଲ୍ଲାସ ତ୍ରାସ ।

ଧନ୍ୟ ଶିଳ୍ପୀ, ଦର୍ଶାଇଛି ଏଥି ଦେହତତ୍ତ୍ୱ,
ବାହ୍ୟେ ରକ୍ତ ମାଂସ ଅସ୍ଥି ଶିରାସ୍ନାୟୁବର୍ଗ ।

ଭିତେ ଆତ୍ମରୂପୀ ବ୍ରହ୍ମ ବିବିକ୍ତ ଅନ୍ତରେ,
ଅଙ୍କିତ ଏ ମହାଲେଖ୍ୟ ଜୀବନ୍ତ ସତ୍ୟରେ ।

ସ୍ୱର୍ଗ ମର୍ତ୍ତ୍ୟ ଯୋଗସ୍ତମ୍ଭ ଏ ଦେଉଳବର,
ଜାତୀୟ ଉନ୍ମେଷ ଦିନେ ଆଣିବ ନିକର ।



(ଙ)

## ନୀଳଚକ୍ର ।

ଏ ସିଦ୍ଧ କାଉଁରୀମନ୍ତ୍ର ନୀଳଚକ୍ର ଜାଣେ,
ଲକ୍ଷିତେ ରଙ୍ଗ ଭାମସେ ନାଶି ସନ୍ତ୍ରେ ଆଣେ ।

ନେଇଛି ସେ ଉଚ୍ଚଗୁଣେ ଗଢ଼ି ଉଚ୍ଚାସନ,
ମୂର୍ଖେ ସିନା ହଜାସନ ହଜେ ମହାଜନ ।

ଧର୍ମଯାତ୍ର ଦୀପ ଶିଖା ବହୁଦୂର ଯାଏଁ
ସମଭାବେ କାଳେ କାଳେ ଜଗତେ ଦେଖାଏ ।

ଦୀପି ମହା ନୀଳମାରେ ଅନନ୍ତ ଗଗନ
ପତିତପାବନ ନାମେ ଉଡ଼ାଏ କେତନ ।

ଏହୁ ଚକ୍ର ସୁଦର୍ଶନ, ଅନବଦ୍ୟ ଧନ୍ୟ,
ଛେଦ ଜୀବନର ସୁପ୍ତି ଆଣେ ଜାଗରଣ ।

ନୃପତି ଅନଙ୍ଗଭୀମ ମୌନ ମହାମୂର୍ତ୍ତି (୧)
ବହିଅଛୁ କାଳେ କାଳେ ଯଥା ଇଷ୍ଟବୃତ୍ତି ।

ଦ୍ୱାବିଂଶତି ହସ୍ତ ନେମୀ ଦଶେ କ୍ଷୁଦ୍ରବତ,
ଆପଣାକୁ କ୍ଷୁଦ୍ରରୂପେ ପ୍ରକାଶେ ମହତ ।



(୧) ଅନଙ୍ଗଭୀମ ଦେବ ବଡ଼ଦେଉଳନିର୍ମାତା ବୋଲି ଡଙ୍କରେ ଲକ୍ଷିତ ଅଛି ।

## (୪)

## ଜଗନ୍ନାଥ ଦର୍ଶନ ।



ଜଗନ୍ନାଥ ଜଗତ୍ପତି ହେ ଜଗନ୍ନିବାସ,
ମହିମା ଶୁଣିମା ହେଉ ହତାଶର ଆଶ ।

ଲଭି ଚରଣସନ୍ନିଧି ମୁଁ ହେ କରୁଣାମ୍ବୁଧି,
ମଣେ ଯା ତୁମ୍ଭଙ୍କୁ ଦୂର, ଏ ଅଧମ ବୁଦ୍ଧି ।

ଆସିଛି ଦେଉଳମଧ୍ୟେ ଦେଖିବାକୁ ଧାଇଁ,
ଅନ୍ତର-ମନ୍ଦିରେ ଯେଣୁ ଦେଖାଦେଲ ନାହିଁ ।

ଏ କି ଲୀଳା ମହାପ୍ରଭୁ, ପ୍ରତ୍ୟକ୍ଷେ ଶ୍ରୀକରେ
ଅର୍ପୁଛ ପ୍ରସାଦ ସଦା ଆପତଙ୍ଗ ନରେ ।

ମହିମା କରୁଣା ସହ ମିଶି ପ୍ରୀତି ଧାରା
ବହୁଛି ତ୍ରିବେଣୀ ତୀର୍ଥ ପୁରୀଧାମ ସାରା ।

ବାଜୁଛି ମୋହନବଂଶୀ ପ୍ରାଣ-ବୃନ୍ଦାବନେ,
ମାନସ-ଗୋପାଳବାଳ ନାଚେ ତା ଶ୍ରବଣେ ।

ଘନଶ୍ୟାମ ସୌମ୍ୟ କାନ୍ତି କରି ସନ୍ଦର୍ଶନ
ପୁଣ୍ୟ ହେଲା ଆତ୍ମା, ଧନ୍ୟ ହେଲା ଏ ନୟନ ।



## (୫)

## ଦେବାଳୟର ଅଶ୍ଳୀଳ ଚିତ୍ର ।



ଅଶ୍ଳୀଳ ଅଶ୍ଳୀଳ ବୃଥା ପଢୁଅଛ ଦୂର,
କେ ଅଶ୍ଳୀଳ, ଏ ଯେ ଗୂଢ଼ ଜ୍ଞାନର ଚାତୁରୀ ।

ନୀରବେ କହୁଛ ଚିତ୍ର ଶୁଣ ଯାତ୍ରୀଗଣ,
ଇଚ୍ଛା ଯଦି କରିବାକୁ ଦେବତା ଦର୍ଶନ,

ଦେଖ ତେବେ ଜ୍ଞାନଦର୍ପେ, ବଢ଼ାଣିଅ ଦୀକ୍ଷା,
ଦିଅ ଆଗେ ଏଠାରେ ସଂଯମ ପରୀକ୍ଷା ।

ହେବ ଯଦି ଅଧିକାରୀ, ନିର୍ଭୟ ଚିତ୍ତରେ
ପ୍ରବେଶିବ ତେବେ ଯାଇ ମନ୍ଦିର ଭିତରେ ।

ନ କଲେ ପବିତ୍ର ଆତ୍ମା, ଇନ୍ଦ୍ରିୟ ଦମନ,
କେବେ କାହିଁ ଘଟେ ନାହିଁ ଦେବ ଦରଶନ ।

ଗ୍ରାମ୍ୟ ସୁଖେ ଦେହ ମନ ଯାର କଳୁଷିତ,
ବାହାରେ ନିର୍ମଳ ଯେହୁ ଅନ୍ତରେ କୁତ୍ସିତ,

ବୀଭତ୍ସ-ଚରିତେ ଯାର ମୁଦ୍ରିତ ନୟନ,
ନୁହେ ସେ କଦାପି ଦେବଦର୍ଶନେ ଭାଜନ ।



## (୨)

## ରଥଯାତ୍ରା ।



ଏ କି ଲୀଳା ଲୀଳାମୟ, ମଣ୍ଡି ନନ୍ଦୀଘୋଷେ
କେଣେ ବଳେ କରୁଅଛ ଅଦମ୍ୟ ସନ୍ତୋଷେ ?

ଦେହ-ନନ୍ଦୀଘୋଷ ପରି ତବ ପ୍ରିୟ ଯାନ,
କାହିଁ ଆଉ ମନୋରଥ—ରଥ ପ୍ରଭୁ ଆନ ।

ବୁଝିଲି ବୁଝିଲି ପ୍ରଭୁ, ଅଭିନୟ ତବ,
ଅର୍ପୁଅଛ କେତେ ଶିକ୍ଷା ନିତ୍ୟ ନବ ନବ ।

ବାମନସ୍ୱରୂପୀ ଆତ୍ମା ଦେହ-ରଥେ ରଥୀ,
ଇନ୍ଦ୍ରିୟ-ଘୋଟକ ତହିଁ, କାମନା-ସାରଥୀ ।

ନିଜ ମଧ୍ୟେ ପଶି ନିଜେ ଜ୍ଞାନନେତ୍ର ଫେଡ଼ି
ଦେଖେ ଯେ, ସେ ପାରେ ଏକା ପୁନର୍ଜନ୍ମ ଏଡ଼ି ।

ଏହି ତ ତୁମ୍ଭର ସାର ମୌନ ଉପଦେଶ,
ଏହାହିଁ ତ ରଥଯାତ୍ରା ମୌଳିକ ଉଦ୍ଦେଶ୍ୟ ।

ନୀଳମଣି, ଏ ମିନତି ତବ ପାଦତଳେ,
ଉତ୍କଳର ନନ୍ଦୀଘୋଷ ଚଳୁ ଏ ଉତ୍କଳେ ।

କେତେ ଗଲା କେତେ ମାଡ଼ି ଯାଉଛି ବରଷି,
ଆଜ ତୁମ୍ଭେ ହସୁଅଛ ତର୍କିଆରେ ବସି ।

ସହୁଅଛ ଅବହେଳେ ଯାତନା ପ୍ରଚୁର,
ଉତ୍ତର ଶାସ୍ତି କି ପ୍ରଭୁ ଏତେ ସୁମଧୁର !

ସହେ ଯେହ୍ନେ ଅଗ୍ନିତର ଲାଞ୍ଛନ ଗଞ୍ଜନ,
ସେହ୍ନ ଏକା ପ୍ରଭୁପଣେ ସର୍ବାଂଶେ ଭାଜନ ।

କଥା କଥାକେ ଯେ ରୁଷ୍ଟ ବଦ୍ଧ ଗୁରୁ ଦର୍ପ,
ପ୍ରଭୁ ନୁହେ ସେ ମନସ୍ୱୀ—ବିଷଧର ସର୍ପ



## (୭)

## ବାହୁଡ଼ା ଯାତ୍ରା ।



ଜୟରଲ୍ଲ ଜୟରଲ୍ଲ ହେ ଚକାନୟନ,
ଧନ୍ୟ ହେଲା ପ୍ରଭୁ ଆଜ ଦେହ ପ୍ରାଣ ମନ ।

ପୂର୍ଣ୍ଣ ହେଲା ମନୋରଥ ଆବାଲ୍ୟପୋଷିତ,
ଧ୍ୱଂସ ହେଲା ପାପରାଶି ଆଜନ୍ମ ଅର୍ଜିତ ।

କାହୁଁ ଏ ବାହୁଡ଼ା ବିଜେ ନବ ଦିନ ଯାତ୍ରା,
ବୃଦ୍ଧି କର ଭକ୍ତ ଜନ ଆନନ୍ଦର ମାତ୍ରା ।

ଏଡ଼େ ହୁଣ୍ଡା ତୁମ୍ଭେ କି ହେ, ଶ୍ରୀଦଧିବାମନେ,
ଶିଖାଇଣ ଘେନଗଲେ ମାଉସୀ ଭବନେ ।

ଠକାଇବ କହ ପରା ରମାଙ୍କୁ ଏତକ,
କାହୁଁ ଏହି ଠକ ପାଠ ପଢ଼ିଲ ହେ ଠକ !

ଭୁଲିବେ କି ଲକ୍ଷ୍ମୀଦେବୀ ଶୁଣି ଏ ଛଳନା,
ସର୍ବଜ୍ଞା, ସର୍ବଗା, ସତୀ, ସାଗର-ଦୁଲଣା ।

ନ ଖଟିବ ଏହି ମାୟା ମହାମାୟା କତି,
ବେଳ ଥାଉଁ ଅନ୍ୟୋପାୟ ଚିନ୍ତ ବଧୂପତି ।



## (୮)

## ମହାପ୍ରସାଦ ।



କି ଆମୋଦ କି ମହିମା ମହାପ୍ରସାଦର,
ଦୃଷ୍ଟିମାତ୍ରେ ପୂର୍ଣ୍ଣ ହୁଏ ଭକ୍ତିରେ ଅନ୍ତର ।
ହେଉ ପଛେ ବାସି, ଦ୍ୱିଧା ଆସେ ନାହିଁ ମନେ,
ପ୍ରାପ୍ତିମାତ୍ରେ ବଳବତୀ ଆକାଂକ୍ଷା ସେବନେ ।
ହୁଏ ନାହିଁ ଅପବିତ୍ର ଇତର ପରଶେ,
ଅପବିତ୍ରେ ସୁପବିତ୍ର କରେ ପ୍ରତ୍ୟୁତ ସେ ।
ଜାତିଭେଦ ସଂକୀର୍ଣ୍ଣତା ପରିହରି ନରେ
କରନ୍ତି ଭୋଜନ ଏକ ପାତ୍ରେ ଏକତ୍ରରେ ।
ଅଳ୍ପରେ ସନ୍ତୁଷ୍ଟି ଆହା, କି ମହାପ୍ରଭାବ,
ଦର୍ଶ ମାତ୍ରେ ବିଦ୍ୟୁଦ୍‌ବେଗେ ଜାଗେ ଧର୍ମଭାବ ।
ପାର୍ଥିବ ପ୍ରାକୃତ ଦୋଷ କରି ସଂଶୋଧନ
ଶାଶ୍ୱତ-ସୁବର୍ଣ୍ଣେ କରେ ହୃଦୟ ମଣ୍ଡନ ।
ମର୍ତ୍ତ୍ୟେ ଯେ ଅମୃତ, ଆଖ୍ୟା କୈବଲ୍ୟ ଯାହାର,
କଳ୍ପନା ଅତୀତ ତାର ମହିମା ଅପାର ।



## ( ୯ )

## ଶରଧାବାଲି ।



ବାଲୁକା ନୁହେ ତ ଏହା କୈବଲ୍ୟ-କଣିକା,
ବାଞ୍ଛନ୍ତି ଅମରେ ଏଥି ତିଳକର ଟୀକା ।

ଏଠାରେ ବାମନାଭୂତ ପର୍ବ ନିତ୍ୟ ନିତ୍ୟ *
ଗାଏ ଦୂର ଅଗଣିତ ସୌଭାଗ୍ୟସଙ୍ଗୀତ ।

ଚିର ଶାନ୍ତି ପ୍ରୀତିମୟ ସୁପାବନ ସ୍ଥାନ,
ନିର୍ବାକ ମାନବ ତୁଣ୍ଡେ କରେ ଭାଷା ଦାନ ।

ମୃତ୍ୟୁ ଲଭେ ଏ ସ୍ଥଳେ ଯେ, କେଉଁକି ତା' ସୁକୃତ,
ଲଭୁଥିବ ସିନା ସେହୁ ମୃତ୍ୟୁରୁ ଅମୃତ ।

ତୋହର ଶରଧାବାଲି ନାମ ମଧୁମୟ,
ତହୁଁ ବଳ ମଧୁମୟ ସ୍ପର୍ଶ, ଦୃଶ୍ୟଚୟ ।

ଅବଗାହି ତୋ ଧୂଳିରେ ପ୍ରେମୀ ଭକ୍ତଦଳ
ମଣନ୍ତି ଆତ୍ମାକୁ ଧନ୍ୟ ପବିତ୍ର ଶୀତଳ ।

ଏ ଉତ୍କଳ-ବୃନ୍ଦାବନେ ତୁହି ବ୍ରଜରେଣୁ,
ବାଜୁଛି ତୋ ଗର୍ଭେ ମଧୁ ମିଳନର ବେଣୁ ।



---

* ଶରଧାବାଲିରେ ବାର୍ଷିକ ଜାତୀୟ ସମନ୍ୱୟରେ ବାମନାଭୂତ ଖେଳବାର ପ୍ରଥା ଅଛି ।

## ( ୧୦ )

## ରାଧାକାନ୍ତ ମଠ ।



ଶ୍ରୀ ଚୈତନ୍ୟ ପୁଣ୍ୟପୀଠ ରାଧାକାନ୍ତ ମଠ,
ମହନ୍ତମଣ୍ଡଳୀ ଯାର ସାଧୁ ସତ୍କର୍ମଠ ।

ସାକ୍ଷାଦ ଗୌରାଙ୍ଗସ୍ମୃତି ରକ୍ଷେ ରହି ଯଥା,
ମହାଜନ ସ୍ମୃତିପୂଜା ପାଳନ୍ତି ସର୍ବଥା ।

ଆବର ଉଦ୍‌ଘାଟି ବହୁ ବୈଷ୍ଣବୀୟ ଗ୍ରନ୍ଥ
ପ୍ରଦାନେ ସାଧକଚୟେ ସତ୍ୟ ଶିବ ପନ୍ଥ ।

ଅତିଥି ସଙ୍ଗତ ଶ୍ଳୋକେ ରୁଚ ହରଷତ,
କେତେ ଦୀନ ଦୁଃଖୀ ନିତ ପାଉଛନ୍ତି ପତ ।

ସଙ୍କୀର୍ତ୍ତନ ଗଙ୍ଗାଧାର ଯାଉଛି ପ୍ରବାହି,
ଅନୁକ୍ଷଣ ଉଠେ ଶବ୍ଦ ନିମାଇ ନିତାଇ ।

ଏହି ମହାସ୍ମୃତି ମହା-ମନ୍ତ୍ରର ଘୋଷଣା
କରୁଛି ଜୀବନେ ମଠ ଏକାନ୍ତ ସାଧନା ।

ବାହ୍ୟ ଅଭ୍ୟନ୍ତର ତାର ପ୍ରଶାନ୍ତ ନିର୍ମଳ,
ବୈଷ୍ଣବଧର୍ମର କୋଟି ବର୍ତ୍ତିକା ଉଜ୍ଜ୍ୱଳ ।



## ( ୧୧ )

## ସ୍ୱର୍ଗଦ୍ୱାର ।



ଏହି ପଥେ ପଶି ଦେବେ ଆସନ୍ତି ଓହ୍ଲାଇ
ବିଶ୍ୱେଶ୍ୱର ମହାରଥ ସନ୍ଦର୍ଶନପାଇଁ ।

ଉଦାର ଗମ୍ଭୀର କଣ୍ଠେ ମହା ପାରାବାର
ତାଙ୍କ ଆଗମନବାର୍ତ୍ତା କରେ ସୁପ୍ରଚାର ।

ସେକାଳେ ମହୀରେ ହୁଏ ସ୍ୱର୍ଗ ଅବତୀର୍ଣ୍ଣ,
ମହୀ ସୁଦ୍ଧା ପରିଣତ ସ୍ୱର୍ଗେ ଦେବାକୀର୍ଣ୍ଣ ।

ନିଶୀଥ ନିର୍ଜ୍ଜନ ବେଳା ଶାନ୍ତିମୟ ସ୍ଥାନ,
ସଂସାରକ୍ଷେତ୍ରୁ ଦୂରେ କରେ ଅବସ୍ଥାନ ।

ଭାଙ୍ଗିପଡ଼େ ବୀଚିମାଳା ଆସି ସ୍ତରେ ସ୍ତରେ,
ନର-ଭାଗ୍ୟ-ଊର୍ମି ଯଥା ନାସ୍ତିତ୍ୱ ସମୁଦ୍ରେ ।

ମହାନନ୍ଦେ ମହାଭାବେ ବୁଡ଼ିମରେ ମନ,
ଉପକଣ୍ଠେ ସିନ୍ଧୁଗର୍ଭେ ତରଣୀ ଯେସନ ।

ହୁଡ଼ିଯାଏ ଆତ୍ମସତ୍ତା ଭାବୁକ ମାନବ,
ସେ ସୁଖ ତା ପକ୍ଷେ ସିନା ଅମର ଦୁର୍ଲ୍ଲଭ ।



( ୧୨ )

## ସିନ୍ଧୁ ।

❋❋

କି ପୁଣ୍ୟ ଅନନ୍ତ ବେଦ ଦୁର୍ବୋଧ ଭାଷାରେ
କରୁଛୁ ଆବୃତ୍ତି ସିନ୍ଧୁ, କେବଣ ଆଶାରେ ?

ତରଙ୍ଗ ଆକାରେ ଭାବ ବୁଲୁଅଛୁ ଖେଳ,
ଖଣ୍ଡିବୁ ସେ ଭବେ କାହା ଅଜ୍ଞାନ-କୁହେଳୀ ?

ବିପୁଳ ବିସ୍ତୃତ ତୋର ବୁଝାଇଛୁ ଆଡ଼,
ବିଲୋକନମାତ୍ରେ ପଡ଼େ ନୟନ ପିଚ୍ଛାଡ଼ି ।

ଏହି ତ ତୋ ବିଶେଷତ୍ୱ, ପ୍ରଦାନେ ଜଗତେ
ସଂଯମର ମହାଦୀକ୍ଷା, ଚିର ଅବିରତେ ।

ବୁଝିଲି ତୋ ଭାବ, ତୁହି ଅଥୟ ପ୍ରେମରେ,
ଗାଢ଼ ଆଲିଙ୍ଗନ ଆଶେ ଅନନ୍ତ ଅମ୍ବରେ

ରହିଛୁ ପ୍ରସାରି ବାହୁ ଯୁଗଯୁଗାନ୍ତରୁ,
ଲଭିବୁ ତୁ ମିଳନର ବାଞ୍ଛା-କଳ୍ପତରୁ ।

ଆକାଶର ସମଧର୍ମୀ ତୁ ମହାସାଧକ,
"ଯୋଗ୍ୟେ ଯୋଗ୍ୟ ଚାହେଁ ସିନା", ଏ ବାଣୀ ସାର୍ଥକ ।



# ପ୍ରାକୃତିକୀ ।



## (୧)

## କହ୍ଣିଫୁଲ ।



ହରିଦ୍ରା-ଜର୍ଜ୍ଜରଦେହା କାନ୍ତକୁଳେଶ୍ୱରୀ,
ସୁବର୍ଣ୍ଣ ଦୁର୍ବର୍ଣ୍ଣ ଦଶେ ରୂପରେ ତୋହର ।
ସାନ୍ଧ୍ୟାନନେ ଢଳ ଢଳ କରୁ ତୁ ପ୍ରକାଶ,
ମଧୁର ସୁବାସ ସହ ମଧୁର ସୁହାସ ।
କ୍ଷୀଣାୟୁ ତୁ, ସଞ୍ଜେ ଫୁଟି ମଉଳୁ ସକାଳେ,
କେଉଁ ଋଷିବର ତେଣୁ ଶାପ ଦାନ କଲେ ।(୧)
ସରଳା କୁମାରୀକୁଳ ସରଳ ପ୍ରାର୍ଥନା
ଶାରଦ-ପର୍ବେଶ-ପଦେ କରୁ ଜଣାମଣା । (୨)
କୌମୁଦୀପତିର ତୁହି କୌମୁଦୀ ସମାନ
ସଙ୍ଗ ସହୀ, ପତି ସହ ଲଭୁ ଅନ୍ତର୍ଦ୍ଧାନ ।
କେବଣ ଅଜ୍ଞାତ ଦେଶୁ ଆସି ତୁ ତାପସି,
କି କଠୋର ଯୋଗ ସାଧି ସାରା ନିଶି ବସି,
ନଇଯାଉ କେଉଁଆଡ଼େ, ଏ ଗୂଢ଼ ରହସ୍ୟ
ଭାବିଲେ ଭାବୁକ ହୁଏ ବିସ୍ମୟେ ଅବଶ ।



---

(୧) "ସଞ୍ଜେ ଫୁଟି ସକାଳେ ଯା, କହ୍ଣିଫୁଲ ଅପୂଷ ପା" ଏହି ପ୍ରବାଦ ପ୍ରଚଳିତ ଅଛି ।

(୨) ଅନୂଢ଼ା ବାଳିକାମାନେ କୁମାର ପୂର୍ଣ୍ଣିମାରେ ଚନ୍ଦ୍ରଙ୍କୁ କହ୍ଣିଫୁଲରେ ପୂଜା କରନ୍ତି ।

## ( ୨ )

## ଅଙ୍କୁ ଫୁଲ ।



ଅଙ୍କୁ, ତୋର ନାହିଁ କାହିଁ ସମ୍ୟକ ଆଦର,
ବାସେ କି ତୋଠାରୁ ବେଶି ଚମ୍ପା ନାଗେଶ୍ୱର ?
କେତେ ଯତ୍ନେ ଉଦ୍ୟାନରେ ହୁଏ ସେ ପାଳିତ,
ଊଣା ତୋ କପାଳ, ତୁହି ସେ ସୁଖୁ ବଞ୍ଚିତ !
ତଥାପି ଅସ୍ଥାନେ ବସି କରୁ ବିତରଣ
ଅନନ୍ତ ସୌରଭ-ରୂପ ଅମୂଲ୍ୟ ରତନ ।
ବନ ତୋର ଜନ୍ମଭୂମି, ଲାଗୁ ତା ସେବାରେ,
ଏଥୁ ବଳ କି ସୌଭାଗ୍ୟ ଅଛି ବା ସଂସାରେ !
ତେଇଁ ଉଠେ ତୋ ଦର୍ଶନେ ବାଲ୍ୟ ସୁପ୍ତ ସ୍ମୃତି,
ସେ ଅତୀତ ସୁଖ ସ୍ମରି ତୁଟିଯାଏ ଧୃତି ।
ନିଦାଘ ପ୍ରଦୋଷେ ଗୁନ୍ଥି ତୋହର ଫୁଲେ ହାର,
ପିନ୍ଧି ଗଳେ ଲଭୁଥିଲି ଆନନ୍ଦ ଅପାର ।
ପ୍ରାତେ ମରୁ ସାନ୍ଧେ ରତ କାଳ ସଙ୍ଗେ ରଣ,
ମାତ୍ର ତୋ ମରଣ ନୁହେ ବିଫଳ ମରଣ ।



(୬)

## ରସାଳ ।

ଆମ୍ର ତୁ ଅମୃତ ଅଧାମ,
ସାର୍ଥକ ତୋ "ରସାଳ" ନାମ ।

ମର୍ତ୍ତ୍ୟେ ତୋହର ଅଧିଷ୍ଠାନ,
ବିଧିର ଅନ୍ତରକ୍ତ ଦାନ ।

ସୁବର୍ଣ୍ଣେ କଣୁ ସୁବର୍ଣ୍ଣକୁ,
ସୌରଭେ କଣୁ ଭୁବନକୁ ।

ବଳେ ତୋ ମଣ୍ଡନ ମହିମା
ଭାଷାଶିଳ୍ପିର ଶିଳ୍ପ ସୀମା ।

ବର୍ଣ୍ଣନେ ଅକ୍ଷମ ସେ ନିତ୍ୟ,
ତୋ ପ୍ରାଣ ମଧୁର ସାହିତ୍ୟ ।

ଅବ୍ୟକ୍ତିଗତ ତୋ ଜୀବନ,
ଅଟେ ତା ସାଧାରଣ ଧନ ।

ସତ୍ୟ ସୁନ୍ଦର ରୁହ ଶିବ,
ପରାର୍ଥେ ସୃଷ୍ଟ ତୋର ଜୀବ ।

ତୃପ୍ତି ସୁରୁଚି କର ଦାନ
ଜଗତ ଜର ଜୀବ ପ୍ରାଣ ।

ପୃଥ୍ୱୀରେ ପୃଥ୍ୱୀକର ଫଳ ,
ତୋ ପରି ଅଛିବ ବିରଳ ।

ଫଳ-ରାଜ୍ୟରେ ତୁହି ରାଜା,
ତୋ ନାମେ ବାଜେ ଜୟବାଜା ।



(୪)

## ପଣସ ।

ପଣସ, ତୁ ପରାଜନ୍ମ କରୁ ଖଜା ଗଜା,
ଆକୃତିରେ ପ୍ରକୃତିରେ ଫଳକୁଳେ ରଜା ।

ଖଜା ତୁଲ୍ୟ ଅଟୁ ତୁହି ବାହାରେ ନିଷ୍ଠୁର,
ଭିତରେ କୋମଳ ପୁଣି ସରସ ମଧୁର ।

ତୋ ଦର୍ଶନେ ହୁଏ ମୋର ସନ୍ଦଗ୍ଧ ମାନସ,
ମଧୁଚକ୍ର କିମ୍ବା ତୁହି ଅମୃତକଳସ ।

ତୁଷ୍ଟିକର ପୁଷ୍ଟିକର ସୁଗନ୍ଧ ସୁସ୍ୱାଦ,
ହର ନେଉ କ୍ଷୁଧା ତୃଷା ସହ ଅବସାଦ ।

ନୁହେ ତୋହପାଇଁ ତୋର ସବଙ୍ଗ ଜୀବନ,
ସ୍ୱାର୍ଥ ତୋର ଆତ୍ମତ୍ୟାଗ—ପରାର୍ଥ ସାଧନ ।

ଦାନଯଜ୍ଞ, ସେବାଯଜ୍ଞ କରି ସମାପନ
ନିଜକୁ ଅହୁତିରୂପେ କରୁ ସମର୍ପଣ ।

ଗୁରୁପାକ ବୋଲି ଫଳ, ନୋହୁ ତୁ ଆଦର,
କିଏ ଅବା ଏ ସଂସାରେ ଦୋଷବର୍ଜିତ !



(୫)

## ତାଳପତ୍ର ।

କେ ବୁଝିବ ତୋହୋ ଗୁଣ,
କେ ଶୁଝିବ ତୋହୋ ଋଣ,
ମାନବ କୀର୍ତ୍ତି ରକ୍ଷଣେ ତୁହି ନିପୁଣ । ୧ ।

ଅକଥିତ ତୋହୋ ମୂଲ୍ୟ,
ସ୍ୱର୍ଣ୍ଣପଦ୍ମ ନୁହେ ତୁଲ୍ୟ,
ମହିମା କଳନା ବିନା ତୋର ବାହୁଲ୍ୟ । ୨ ।

ଜଇ ଚନ୍ଦ୍ରା ଜଇ ଭାବ
ତୋହୋ ବକ୍ଷେ ଲଭେ ଠାବ,
ପୁଣ୍ୟ ରାଜ୍ୟ ଧନ୍ୟ ତୋର ମାନ୍ୟ ପ୍ରଭାବ । ୩ ।

ଚିର ପୂଜ୍ୟ ଉତ୍କଳେ ତୁ,
ଜ୍ଞାନ ବୈରାଗ୍ୟର ହେତୁ,
ଉଡୁଛି ଉତ୍କଳେ ତୋର ବିଜୟକେତୁ । ୪ ।

କି ସାହିତ୍ୟ କି ଗଣିତ,
ଇତିହାସ ଲୋକଚିତ,
ନିଖିଳ ମଙ୍ଗଳବିଦ୍ୟା ତୋର ବିଦିତ । ୫ ।

ଏ ଉତ୍କଳ ନାରୀ ନରେ
କୃତଜ୍ଞ ତୋହୋ ଯତ୍ନରେ,
ଅର୍ପୁଛୁ ତାହାଙ୍କୁ ଶିକ୍ଷା ତୁ ନିରନ୍ତର । ୬ ।

ଆନ ପନ୍ଥ ବିଗଣିତ,
ହୁଏ ପଦେ ବିଦଳିତ,
ମାତ ତୁ ଦେବତା ସମ ଚାର ପୂଜିତ । ୭ ।

ଉତ୍କଳ ଧରା ସନ୍ତତେ
ତରଙ୍ଗିଣୀ ତୋହୋ ପଦେ,
ତୋ ଯୋଗୁଁ ସେ ଭାଗ୍ୟବତୀ ଗ୍ରନ୍ଥ-ସମ୍ପଦେ । ୮ ।

ମହାତ୍ମା ପ୍ରତିଭାଚୟ
ରଖିଛୁ କରି ସଞ୍ଚୟ,
ବକ୍ଷ ବିଦ୍ୟାରେ ତୋ ତନୁ ଆଲୋକମୟ । ୯ ।

ତୋ ସଙ୍ଗେ ଏବେ କାକତ
ପ୍ରତିଯୋଗିତାରେ ରତ,
ମାତ ଉତ୍କଳେ ତୋ ଶକ୍ତି ସଦା ଅକ୍ଷତ । ୧୦ ।



(୭)

## ସ୍ୱୈରା ବସନ୍ତ ।



କ୍ରମେ କ୍ରମେ ଶୀତ ପ୍ରଭାବ
ହୋଇ ଆସୁଛି ଅନ୍ତ,
ମହୀବକ୍ଷେ ବହି ଯାଉଛି
ମୃଦୁ ସ୍ୱୈରୀ ବସନ୍ତ ।

କ୍ଷଣେ ଗୁପ୍ତ କ୍ଷଣେ ପ୍ରକାଶ
ଭାଷି ମଧୁର ଭାଷା,
ଖେଳେ ଲୁଚକାଳି ଯେସନ
ଦୀନ ହୃଦୟେ ଆଶା ।

କାହାର କିଛି ନ ସ୍ୱୈରଇ
ବହେ ବୃଥା କଳଙ୍କ,
ମାତ୍ର ତାର ନାହିଁ ତହିଁକି
ତିଳେ ଭ୍ରୂକ୍ଷେପ ଦଙ୍କ ।

ପ୍ରତ୍ୟହ ସାଧେ ସେ ସୃଷ୍ଟିର
ଶୁଭ ସଦୟ ହୋଇ,
ଅନନ୍ତ ଅନ୍ତର ବେଦନା
ଦେଉଥାଏ ସେ ଧୋଇ ।

ନ ଜାଣେ କିଛୁ ସେ ଅପର
ଆତ୍ମ-ଉତ୍ସର୍ଗ ଛଡ଼ା,
ଦେହ ମନ ପ୍ରାଣ ତାହାର
ଖାଲି ତ୍ୟାଗରେ ଗଢ଼ା ।

ମାତୃଭୂମି ପୁଣ୍ୟ ପୀୟୂଷ
ସ୍ତନ୍ୟଧାରା ଯେସନ,
ତେସନ କରେ ସେ କର୍ତ୍ତବ୍ୟ
ପ୍ରାଣିପ୍ରାଣେ ସାଧନ ।

ମଧୁ ସ୍ପର୍ଶେ ତାର ମୁକୁଳେ
ବନସ୍ପତି ସକଳ,
ଶୀତ ରୁକ୍ଷ-ମ୍ଳାନ ଶରୀର
ଦଶେ ରମ୍ୟ ଉଜ୍ଜ୍ୱଳ ।

ଝିର ଝିର ସ୍ୱରେ ନିନାଦେ
ମଧୁ ବୀଣା ତାହାର,
ତୋଷେ ପ୍ରାଣ ତାର କବିତା—
ସ୍ନିଗ୍ଧ ସୁଧା ଝଙ୍କାର ।

ବର୍ଷ ସାହିତ୍ୟରୁ ଅଧ୍ୟାତ୍ମେ
ଯାଏ କ୍ଷଣକେ ରଚ,
ବର୍ଷ ନବଭୂଷା ବେଶାଏ
ମଣିମାଣିକ୍ୟଖଚି ।

ଯୋଗାଏ ଯେ ଭବେ ବିଭବ
ପ୍ରେର ଅଖ୍ୟାତ ଧାର,
ଧିକ ରେ ସଂସାର ଧିକ ତୋ
ବିପରୀତ ବିଗ୍ରର !



(୬)

## ଗୁଡ଼କଙ୍କ ।



ଗୁଡ଼ିକାଙ୍କ ପଛେ ଧାଏଁ ବେଳାରେ ବାଳକ,
ମନ ପଛେ ପଛେ ଯଥା ଧାଏଁ ମୁଁ କାଳକ ।

ଧରଣ ଏ ତୃଣ ଫୁଲ ଶୋଭା ଅପରୂପ,
ବେଳା ପାଖ୍ବାରେ ଖେଳେ ଶିଳେ କ ସ୍ୱଳ୍ପ ।

କାମ୍ବା ଏ କାହାର ଦୂତ ବହ କ ଉଦନ୍ତ
ଖୋଜନ୍ତ କାହାକୁ ବ୍ୟସ୍ତେ ହୋଇ ବ୍ୟଗ୍ରବନ୍ତ ।

କାମ୍ବା ବପ୍ର—ନଭଶ୍ରୀ ତାର ଶିଶୁଗୁଡ଼
ହୁଡ଼ ମାର ଖେଳୁଛନ୍ତ ଦଉଡ଼ା ଦଉଡ଼ ।

ବାମନ ବେଷ୍ଟିବେ ସିନ୍ଧୁ ସଙ୍କୀର୍ତ୍ତନ ରୋଳ
ଶୁଣି କ ଗଢ଼ନ୍ତ ରଙ୍ଗେ ହୋଇ ଭାବେ ଭୋଳ ।

ବହୁଯୁଗ ସାଧନାରେ ନ ମିଳଲ୍ ଫଳ,
ତଥାପି ସାଧନ୍ତ କର ଆଶାକୁ ସମ୍ବଳ ।

ଅଶାରେ ମାନବ ବଞ୍ଚେ, ଅଶା ତାର ହୃତ,
ରହିଛୁ ଆଶାରେ ସିନା ଜଗତ ଜୀବିତ ।



## (୮)

## କେରାଣ୍ଡିମାଳ ଶିଖରରେ ସୂର୍ଯ୍ୟୋଦୟ ।



ବୃହତ-ଖେମୁଣ୍ଡି ପ୍ରକୃତ ସୁଷମା
ସନ୍ଦର୍ଶନ ଅଭିପ୍ରାୟେ
ଭ୍ରମିଲି ଯେବେ ମୁଁ ପର୍ବତ ପ୍ରାନ୍ତେ
ଏକୁଟିଆ ଅସହାୟେ ।

ପ୍ରାଚୀ ସୀମାସ୍ତମ୍ଭ କେରାଣ୍ଡିମାଳର
ମୟୂରକଣ୍ଠିଆ ଛବି
ଦେଖୁ ଦେଖୁ ତାର ସର୍ବୋଚ୍ଚ ଶିଖରେ
ଉଦେ ହେଲେ ବାଳ ରବି ।

ସେ କାଳର ଶୋଭା ଅନୁଭବଯୋଗ୍ୟ
ଅନୁମାନକୁ ଡାକିଲେ,
ଫୁଟି ଉଠିଲା କି ପାଟଳ କମଳ
ମାନସରୋବର ଜଳେ !

ଠାବେ ଠାବେ ପଡ଼ି ଗିରିକଳେବରେ
ପ୍ରଭାତ କିରଣରେଖା
ନିକଷ ପାଷାଣେ କୋଟି ସ୍ୱର୍ଣ୍ଣରେଖା
ଅଙ୍କା ପ୍ରାୟ ଗଲା ଦେଖା ।

ଅବା ଘନ ଅଙ୍କେ    ସୁପ୍ତା ସୌଦାମିନୀ
ଜଗିଲ ନୟ୍ନକାର,
କିମ୍ବା ଗୀଲାଣ୍ଡବ    ବକ୍ଷେ ପ୍ରବାହିତ
ବାଡ଼ବ ଅନଳଧାର ।

କିନ୍ତୁ କ୍ଷଣ ପରେ    ପୀତ ରଞ୍ଜକରେ
ହେଲା ଗିରି ସ୍ୱର୍ଣ୍ଣମୟ,
ସ୍ୱର୍ଣ୍ଣମୟ ଜଳ    ସ୍ୱର୍ଣ୍ଣମୟ ସ୍ଥଳ
ସ୍ୱର୍ଣ୍ଣମୟ ତରୁଚୟ ।

ଏ ମଧୁର କାଳେ    ଧଳା ମେଘମାଳେ
ଗିରିଚୂଡ଼େ ସ୍ତରେ ସ୍ତରେ
ପାଉଲେ ଆସନ    ଧୀରେ ଧୀରେ ଅସି
ଖଣ୍ଡିଏ ଖଣ୍ଡିକ ପରେ ।

ତରଲ ସୁବର୍ଣ୍ଣ    ବର୍ଣ୍ଣେ ବଞ୍ଛୁରିତ
ହୋଇ ସେ ଗଳାବଦ୍ଧ
ବିସ୍ତାରିଲା ସୌମ୍ୟ    * ସ୍ୱର୍ଣ୍ଣମୟ ଶ୍ରୀ
ଯେସନ ସ୍ୱର୍ଣ୍ଣ ସଉଧ ।

ଅବା ପ୍ରଭା-ବଧୂ    ପ୍ରଭାକରଙ୍କର
ରମ୍ୟରଥ ହିରଣ୍ମୟ, *
କିମ୍ବା ବିଶ୍ୱବନ୍ଦ୍ୟା    ଶୋଭାଦେବୀଙ୍କର
ସ୍ୱଚ୍ଛ କନକ ନିଳୟ ।

କିଛି କ୍ଷଣ ପରେ ସେ ଚଞ୍ଚଳ ଘନ
ହୋଇଯାନ୍ତେ ତିରୋହିତ,
ଦିଶିଲା ସେ ଗିରି ଅଭ୍ରଭେଦୀ ଚୂଡ଼ା
କ୍ରମେ କ୍ରମେ ଧୂମାନ୍ୱିତ ।

ମଣ୍ଡାଧର ରୂପ ଅନ୍ଧକାର ସ୍ତୂପେ
ଯୋଡ଼ିବାରୁ ଦିନକର
ଉଠୁଅଛି କିବା କୁହୁଳି କୁହୁଳି
ସେ ସ୍ତୂପୁଁ ଧୂମନିକର ।

ରମ୍ୟ ଗିରିଚୂଡ଼ା ତେଜ ଧୀରେ ଧୀରେ
ଉଠିଲେ ଉପରେ ହର,
ଯାଉଛି କି ଆହା ବାତସ୍ରୋତେ ଭାସି
ଉଜ୍ଜ୍ୱଳ ଦୀପ-ପଞ୍ଜରୀ ।

ଆକାଶ ସହିତେ ଲାଗି ରହିଅଛି
ତୁଙ୍ଗ ଦୀର୍ଘ ଶୈଳକାୟ,
ଦିଶେ ତାହା ନବ- ଚନ୍ଦ୍ରାତପେ ନୀଳ-
ମେଘୀ ପାଟଝାଲି ପ୍ରାୟ ।

କିପାଁ ଗର୍ବେ ଗିରି ତୋଳୁଛୁ ରେ ଶିର
ଯଥା ଉନ୍ମତ୍ତ ମାତଙ୍ଗ,
କିଛି କାଳେ କାଳ ଗିଳି ଦେବ ତୋତେ
ମଣିଣ କ୍ଷୁଦ୍ର ପତଙ୍ଗ ।